# ଲୁଣର ଗୁଣ

ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା

ପ୍ରକାଶକ :

ରାଜ୍ୟ ପ୍ରୌଢ଼ଶିକ୍ଷା ସାଧନ କେନ୍ଦ୍ର

ଉତ୍କଳ ନବଜୀବନ ମଣ୍ଡଳ

ଅନୁଗୁଳ - ୭୫୯୧୨୨ ଓଡ଼ିଶା

ମୂଲ୍ୟ : ଏକ ଟଙ୍କା ପଚାଶ ପଇସା

ଓଡ଼ିଶା ସରକାରଙ୍କ ପ୍ରଦତ୍ତ ରିହାତି କାଗଜରେ ମୁଦ୍ରିତ

# Lunara Guna

*By*

**Smti. Annapurna Maharana**

***Publisher*** :

**State Resource Centre for Adult Education**

Utkal Navajeevan Mandal

**Angul - 759122 Orissa**

**Price: Rupee One & fifty paise only**

***Printed in the concessional paper supplied by the Government of Orissa.***

# ଲେଖିଲେ ଇତିହାସ ହେବ

ଲୁଣର ଗୁଣ ବହୁତ । ପାଣି ଓ ପବନ ପରି ଲୁଣ ସମସ୍ତଙ୍କର ଦରକାର । ଆମ ଦେଶର ତିନପଟେ ସମୁଦ୍ର । ତେଣୁ ଲୋକେ ଲୁଣ ମାରିବା କିଛି ଅନ୍ୟାୟ ନୁହେଁ । ବିଲାତ ସରକାର ଲୁଣ ଟିକସ ବସାଇବା ପରେ ସାରା ଦେଶରେ ଲୁଣ ପାଇଁ ଲଢେଇ ଚାଲିଲା । ଅହିଂସାର ଲଢେଇ ସେ କଥା ଶୁଣିଲେ ଆଜି ମଧ୍ୟ ଦେହ ଶୀତେଇ ଉଠେ । ଆମ ଓଡ଼ିଶା ମଧ୍ୟ ଏ ଲଢେଇରେ ଭାଗ ନେଇ-ଥିଲା । ବାଲେଶ୍ୱରର କସବା, ରହାଳପୁର, ଭୁଣ୍ଡରା ଓ ଇଂଚୁଡ଼ି ଏବଂ କଟକର କୁଜଂଗ, ପାରାଦୀପ, ପାଟପୁର, କାଳିଆପାଟ ଓ ପୋତାକଣ୍ଠର ଲୋକମାନେ ଏ ଲଢେଇ ବିଷୟରେ କେତେ କଥା କହନ୍ତି । ଏ ଲଢେଇର ଲଢୁଆ ସୈନିକମାନଙ୍କ ମଧ୍ୟରୁ ଯେଉଁମାନେ ଅଛନ୍ତି ସେମାନେ ଅନେକ ନରେଇବା କଥା କହନ୍ତି । ଶୁଣିବାକୁ ଭଲ ଲାଗେ । ଲେଖିଲେ ଇତିହାସ ହେବ । ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା ସେଇ ଇତିହାସକୁ ଗପ ଛଳରେ ଲେଖିଛନ୍ତି ଗାଁଗହଳିଆ

ଭାଇଭଉଣୀମାନଙ୍କ ପାଇଁ । ଏଥିରେ ସେମାନଙ୍କର ସାହି- ପଡ଼ଶା, ଶାଶୁଶ୍ୱଶୁର, ବାପମାଆ, ଭାଇଭଉଣୀ, ପୁଅଝିଅ ସମସ୍ତଙ୍କ କଥା ରହିଛି । ଏହା ଲେଖା ହୋଇଛି ସେମାନେ ପଢ଼ିଲା ଭଳି ଓ ବୁଝିଲା ଭଳି ଭାଷାରେ । ଲୁଣମରା ଆନ୍ଦୋଳନର ପଚାଶ ବର୍ଷ ପୂରିଗଲା ଏ ବର୍ଷ । ତେଣୁ ଏ ବହିର ମହତ୍ତ୍ୱ ବଢ଼ିଛି ।

ରାଜ୍ୟ ପ୍ରୌଢ଼ଶିକ୍ଷା ସାଧନ କେନ୍ଦ୍ର ତରଫରୁ ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣାଙ୍କ ପ୍ରତି ମୁଁ କୃତଜ୍ଞତା ଜଣାଉଛି । ବହିଟିର ମଲାଟଟିକୁ ସଜାଇଛନ୍ତି ଶିଳ୍ପୀ ଶ୍ରୀ ଗଙ୍ଗାଧର ଆଚାର୍ଯ୍ୟ । ତାଙ୍କ ତୁଳିରୁ ଏହିଭଳି ଆହୁରି କେତେ ଛବି ଫୁଟି ଉଠୁ ।

ଅନୁଗୁଳ
ଦୁଇ ଅକ୍ଟୋବର ୧୯୮୦

ବିଭୂତି ଭୂଷଣ ମହାନ୍ତି
ନିର୍ଦ୍ଦେଶକ

## ଦାଣ୍ଡୀ - ଯାତ୍ରା

ତିନିଶହ ବର୍ଷରୁ ଅଧିକ କାଳ ବିତିଗଲାଣି । ଇଷ୍ଟ୍ ଇଣ୍ଡିଆ କଂପାନୀ ନାମରେ ଗୋଟିଏ ଫିରିଙ୍ଗୀ ବଣିକ ସଂଘ ଭାରତକୁ ବଣିଜ କରିବାକୁ ଆସିଲେ । ଭାରତରେ ସେତେବେଳେ ମୋଗଲ ରାଜୁତି କରୁଥାନ୍ତି । ଏହି ବଣିକ ସଂଘର ଦଲାଲ ଦିଲ୍ଲୀ ବାଦଶାହଙ୍କ ପାଖରେ ନେହୁରାନେମାନ୍ତ ହୋଇ ତାଙ୍କୁ ନାନା ପ୍ରକାର ଭେଟି ଦେଇ ଏ ଦେଶରେ ବଣିଜ କରିବା ପାଇଁ ଅନୁମତି ହାସଲ କରିନେଲେ । ଭାରତ ସେତେବେଳେ ଧନଧାନ୍ୟରେ ପରିପୂର୍ଣ୍ଣ ହୋଇଥାଏ । ମୋଗଲମାନେ ଯେତେ ଖଜଣାଟିକସ ବସାନ୍ତି, ଲଢ଼େଇ କରି ଧନ ଲୁଟନ୍ତି, ସେ ସବୁ ଏହି ଦେଶ ଭିତରେ ରହେ, ବିଦେଶକୁ ଚାଲି ଯାଏ ନାହିଁ । ଚାଷୀ ଚାଷବାସ କରନ୍ତି । ତେଲୀ ତେଲ ପେଡ଼ନ୍ତି । ବଢ଼େଇ କମାର କାଠ ଓ ଲୁହା ସରଞ୍ଜାମ ତିଆରି କରନ୍ତି । କୁମ୍ଭାର ହାଣ୍ଡି ଗଢ଼େ । ତନ୍ତୀ ଲୁଗା ବୁଣେ । ଘରେ-ଘରେ ଅରଟରେ ସୂତା କଟା ହୁଏ । ଲୋକେ ନାନା କିସମର ଧନ୍ଦା କରି ଖଟି

ଖାଇ କାଟି ପିନ୍ଧି ହସିଖେଳି ଜୀବନରେ ଚଳୁଥାନ୍ତି । ଆମ ଦେଶର ଢାକାଇ, ଚନ୍ଦ୍ରକଣିଆ, ମାଣିଆବନ୍ଧୀ ଆଦି ଲୁଗାର ଚାହିଦା ବିଦେଶରେ ବହୁତ ଥାଏ । ସାଧବମାନେ ସେ ଲୁଗା, ମଶଲା ଆଦି ବିଦେଶରେ ବିକି ଏ ଦେଶକୁ ଧନରତ୍ନ ବୋହି ଆଣନ୍ତି । କୋଟିକୋଟି ଲୋକଙ୍କୁ ଗାଁ ସ୍ତ୍ରୀଲୋକେ ଢିଙ୍କିକୁଟା ଚାଉଳ ଯୋଗାଇ ଦିଅନ୍ତି । ଗାଁରେ କେହି ବେକାର ନାହିଁ, କେହି ଅଳସୁଆ ନାହିଁ । ତେଣୁ କଳିଗୋଳ ମଧ୍ୟ ନାହିଁ । ଯଦି କଳି ଲାଗିଲା, ଗାଁ ପଞ୍ଚାୟତ କଳି ଭାଙ୍ଗି ଦେଲା । କଳି କରି ଜମି ବନ୍ଧା ପକାଇ ଓକିଲ ମୁକ୍ତାରଙ୍କ ଦ୍ୱାରକୁ ଦଉଡ଼ଦଉଡ଼ି ସର୍ବସ୍ୱାନ୍ତ ହେବା ରୀତି ଭାରତ ଜାଣି ନଥିଲା ।

କଥାରେ ଅଛି, "ରଜା ରଜାରେ ଲଢ଼େଇ ହୁଏ, ପ୍ରଜା ବିଚରା ଉଜୁଡ଼ି ଯାଏ ।" ଓଡ଼ିଶା, ବଙ୍ଗଳା, ବିହାରର ନବାବ ସିରାଜୌଦ୍ଦୁଲ୍ଲାଙ୍କୁ ଯୁଦ୍ଧରେ ହରେଇ ଇଷ୍ଟ ଇଣ୍ଡିଆ କଂପାନୀ ନିମକ୍‌ହରାମ୍ ମିର୍‌ଜାଫର୍‌କୁ ନବାବ ଗାଦିରେ ବସେଇଲା । ହତଭାଗା ମିର୍‌ଜାଫର୍ ଅଫିମ, ଗୁଲି ଖାଇ ଖାଲି ଘୁମେଇଲା । ରାଜ୍ୟ ଶାସନ କରି ପାରିଲା ନାହିଁ । କଂପାନୀକୁ ବଙ୍ଗଳା, ବିହାର ଓ ଓଡ଼ିଶାର ଶାସନ ଭାର ସମର୍ପି ଦେଲା । ଭାରତର ଭାଗ୍ୟରବି ଡୁବିଗଲା ।

କଂପାନୀ ପ୍ରଜାଙ୍କୁ ବାଡ଼େଇପିଟି ଲକ୍ଷଲକ୍ଷ ଟଙ୍କା ଖଜଣା ଆଦାୟ କରି ବିଲାତକୁ ପଠେଇଲା । ଏ ଦେଶର କୁଟୀର ଶିଳ୍ପ ଧ୍ୱଂସ କରି ଦେଇ ବିଲାତ ତିଆରି ଜିନିଷ ଏ ଦେଶରେ ବିକି ଏ ଦେଶକୁ ଦୁହିଁ ସବୁ ଧନରତ୍ନ ସାତ ହଜାର ମାଇଲ ଦୂର ବିଲାତକୁ ପଠାଇଲା ।

ବିଚକ୍ଷଣ ଲୋକେ ଏକଥା ବୁଝିଲେ । ଦେଶରେ ଘୋର ଅଶାନ୍ତି ଦେଖା ଦେଲା । ପାଇକ ମେଳି ହେଲା, ସିପାହୀ ବିଦ୍ରୋହ କଲେ । ନାନା ସାହେବ, ଫଡ଼ନାଭିସ୍, ଝାନ୍ସୀ ରାଣୀ ଲକ୍ଷ୍ମୀବାଈ, ବୀର ସୁରେନ୍ଦ୍ର ସାଏ, ରୋଡଙ୍ଗ ବକ୍ସି, ଚକ୍ରୀ ଖୁଣ୍ଟିଆ ଆଦି ଅଗଣିତ ଦେଶଭାଇ ଏହି ବିଦ୍ରୋହରେ ଯୋଗଦେଲେ । କେତେ ଦେଶ ଭାଇ ଫାଶିଖୁଣ୍ଟରେ ଝୁଲିଲେ । କଂପାନୀର ଅନ୍ୟାୟ ଅତ୍ୟାଚାରକୁ କଳି, ଇଂରେଜ ସରକାର ଏ ଦେଶର ଶାସନଭାର ନିଜ



ହାତକୁ ନେଲେ । ମହାରାଣୀ ଭିକ୍ଟୋରିଆଙ୍କ ରାଜୁତି ଆରମ୍ଭ ହେଲା । କିନ୍ତୁ ଶୋଷଣ ବନ୍ଦ ହେଲା ନାହିଁ । ଖୋର୍ଦ୍ଧାର ଦୁର୍ଦ୍ଧର୍ଷ ପାଇକ ଓ ଭାରତର ଅନ୍ୟ ବୀର ଜାତିକୁ ଦବେଇ ଦେବାପାଇଁ ଅସ୍ତ୍ର ଆଇନ ଜାରୀ କରି ଲୋକଙ୍କ ପାଖରେ ଅସ୍ତ୍ରଶସ୍ତ୍ର ରଖାଇ ଦେଲେ ନାହିଁ । ରେଳଗାଡ଼ି ଚାଲିଲା । ଡାକଘର ବସିଲା । ସଡ଼କ ତିଆରି ହେଲା । ଲୋକେ ଇଂରାଜୀ ପାଠ ପଢ଼ିବା ପାଇଁ ସ୍କୁଲ୍ ବସିଲା । କିନ୍ତୁ ଏ ସବୁ କରା ଯାଉଥାଏ ସେମାନଙ୍କ ଜମିଦାରିଆ ଶାସନକୁ ମଜବୁତ କରିବାପାଇଁ; ଏ ଦେଶରୁ ଧାନ, ଗହମ, ଝୋଟ, ଚମଡ଼ାଠାରୁ ଆରମ୍ଭ

କରି ମଲା ଗୋରୁଙ୍କ ହାଡ ସୁଦ୍ଧା ନିଜ ଦେଶକୁ ବୋହି ନେବା ପାଇଁ । ପୁଣି ସେ ଦେଶରେ ଏହି ବୋଝେଇ ଜାହାଜ ଖଲାସ ହୋଇ ଖାଲି ଜାହାଜ ଫେରିବ କାହିଁକି ? ସେ ଜାହାଜରେ ସେ ଦେଶର ଲୁଣ ବୋଝେଇ ହୋଇ ଏ ଦେଶକୁ ଆସି ବିକ୍ରୀ ହେଲା । ଏ ଦେଶରେ ଲୁଣ ଟିକସ ଜାରୀ କରି ଲୁଣ ମରା ବନ୍ଦ କରାଗଲା । ଏ ଦେଶରୁ କପା ନେଇ ସେ ଦେଶରେ ଲୁଗା ତିଆରି ହୋଇ ଆସି ଏ ଦେଶରେ ବିକ୍ରୀ ହେଲା । ଗାଁ ଲୋକଙ୍କ ହାତ ବନ୍ଦ ହେଲା । ବେକାର ବଢ଼ିଲେ, ଆଳସ୍ୟ ବଢ଼ିଲା । କଳିଗୋଳ ମଧ୍ୟ ବଢ଼ିଲା । ଏହି ଶାସନ ଜାରୀ ରଖିବା ପାଇଁ ହଜାରହଜାର ଟଙ୍କା ଦରମା ଦେଇ ଗୋରା ସୈନ୍ୟ ଗୋରା ଅମଲାଙ୍କୁ ଆଣି ଏ ଦେଶରେ ରଖିଲେ । ଅଥଚ ଆମ ଦେଶ ଲୋକଙ୍କ ମଜୁରୀ ହୋଇଥାଏ ଦିନକୁ ଦୁଇ ଅଣା ।

ଦାଦାଭାଇ ନୌରଜୀ, ଲୋକମାନ୍ୟ ତିଳକ, ଲାଲା ଲାଜପତ୍‌ରାୟ ଆଦି ଦେଶଭକ୍ତ, ପ୍ରବୀଣ ଲୋକେ ଏ ଚତୁରୀ ବୁଝିପାରି ଏହାର ପ୍ରତିବାଦ କଲେ । ସରକାର ସେମାନଙ୍କୁ କାହାକୁ ଜେଲ୍‌ରେ ପୂରାଇଲେ, କାହାକୁ କଳାପାଣି ପଠାଇଲେ; କେତେ ଲୋକ ଫାଶିଖୁଣ୍ଟରେ ଝୁଲିଲେ । କିନ୍ତୁ ଲୋକଙ୍କ ଆଖି ଫିଟିଲା । ଲୋକେ ଏହି ଶାସନରୁ ମୁକୁଳିବା ପାଇଁ ମେଳି କଲେ । ମହାତ୍ମାଗାନ୍ଧୀ ହେଲେ ଏ ମେଳିର ନେତା । ଖବରକାଗଜରେ ଲେଖା ହେଲା, ସଭାସମିତିରେ ବକ୍ତୃତା ହେଲା, ସରକାରଙ୍କର ଏ ନୀତି ନ ବଦଳିଲେ ଦେଶର ଦୁର୍ଦ୍ଦଶା ମେଣ୍ଟିବ ନାହିଁ । ଶେଷରେ ୧୯୨୮ ମସିହା ଡିସେମ୍ବର ମାସରେ ଇଂରେଜ ସରକାରଙ୍କୁ କହି ଦିଆହେଲା ଯେ ବର୍ଷକ ମଧ୍ୟରେ ଭାରତକୁ ଔପନିବେଶିକ

ସ୍ୱାୟତ୍ତ ଶାସନ ନ ଦେଲେ ଆମେ ସ୍ୱାଧୀନତା ପାଇଁ ଲଢ଼ିବୁ । କିନ୍ତୁ ଆମ ଲଢ଼େଇ ଚାଲିବ ଶାନ୍ତିପୂର୍ଣ୍ଣ ନ୍ୟାୟସଂଗତ ଉପାୟରେ ।

ଇଂରେଜ ସରକାର ଏହି କଥାକୁ ହେୟଜ୍ଞାନ କଲେ । କଥା ପୂରିଲା । ଭାରତବାସୀ ୧୯୩୦ ଜାନୁଆରୀ ଛବିଶ ତାରିଖ ଦିନ ସାରା ଭାରତରେ ଜାତୀୟ ପତାକା ଉଡ଼ାଇ ପୂର୍ଣ୍ଣ ସ୍ୱରାଜ୍ୟର ସଂକଳ୍ପ ଗ୍ରହଣ କଲେ । ଏହାର ଚାରିଦିନ ପରେ ମହାତ୍ମା ଗାନ୍ଧୀ ବଡ଼ଲାଟଙ୍କୁ ଜଣାଇଦେଲେ ଯେ ସରକାର ମଦ କାରବାର ବନ୍ଦ କରନ୍ତୁ, ଲୁଣ ଟିକସ ଉଠାଇ ଦିଅନ୍ତୁ, ସୈନ୍ୟ ବିଭାଗ ଖରଚ ଓ ସରକାରୀ ଅମଲାଙ୍କ ଦରମା କମାନ୍ତୁ, ଜମି ଖଜଣା ଶତକଡ଼ା ପଚାଶ ଭାଗ କମାନ୍ତୁ, ବିଦେଶୀ ଲୁଗା ଉପରେ ଟିକସ ବସାଇ ଦେଶ ତିଆରି ଲୁଗା କାରବାରକୁ ରକ୍ଷା କରନ୍ତୁ, ଆତ୍ମରକ୍ଷା କରିବା ପାଇଁ ଲୋକଙ୍କୁ ଅସ୍ତ୍ରଶସ୍ତ୍ର ରଖିବାକୁ ଅନୁମତି ଦିଅନ୍ତୁ, ଏ ଦେଶର ଜାହାଜାତୀ କାରବାର ଚଳିବା ପାଇଁ ସେହି କାରବାରର ନିରାପତ୍ତା ରକ୍ଷା କରନ୍ତୁ । ଏହା ନ କଲେ ଦେଶର ସ୍ୱାଧୀନତା ପାଇଁ ଅହିଂସ ପନ୍ଥାରେ ଆନ୍ଦୋଳନ ଆରମ୍ଭ ହେବ । ବଡ଼ଲାଟ ଏ ଦାବୀକୁ ଖାତିର କଲେ ନାହିଁ ।

ଗାନ୍ଧିଜୀ ଘୋଷଣା କଲେ ଯେ ଏ ଦେଶର ତିନପଟେ ସମୁଦ୍ର । ସରକାର ଏ ଦେଶ ଉପରେ ଲୁଣଟିକସ ବସାଇ ସବୁଠାରୁ ଗରିବ ଲୋକଙ୍କ ପ୍ରତି ସୁଷା ଅନ୍ୟାୟ କରିଛନ୍ତି । ପାଣି ଓ ପବନ ପରି ଲୁଣ ଲୋକଙ୍କର ଅତି ଦରକାରୀ ଜିନିଷ । ଭାରତର ଗରିବ କୃଷୀମୂଲିଆ ଓ ସେମାନଙ୍କ ଗାଈଗୋରୁଙ୍କ ପାଇଁ ଲୁଣ ବେଶି ଦରକାର । କାରଣ ସେମାନେ ଏ ଦେଶର ଖରାତରେ ପରିଶ୍ରମ କରୁଥିବାରୁ ସେମାନଙ୍କ ଦେହରୁ ବହୁତ ଝାଳ ବୁହେ । ସେହି ଝାଳ ବୋହି

ସେମାନଙ୍କ ରକ୍ତରୁ ଲବଣାଂଶ କମି କମି ଯାଏ । ଗରିବ ମୂଲିଆର ଢୋକ ହେଲା ତୋରାଣିରେ ଚୁଟ୍କା ଲୁଣ ଟିକିଏ । ମୁଁ ଏହି ଅନ୍ୟାୟ ଆଇନକୁ ଅମାନ୍ୟ କରିବି ।

ଗୁଜରାଟର ସାବରମତୀ ନଦୀ କୂଳରେ ଗାନ୍ଧିଜୀଙ୍କର ସତ୍ୟାଗ୍ରହ ଆଶ୍ରମ । ସେହି ଆଶ୍ରମର ଅଠସ୍ତରି ଜଣ ବଛାବଛା ସାଥୀଙ୍କୁ ସାଙ୍ଗରେ ଧରି ସେ ଲୁଣ ଆଇନ୍ ଅମାନ୍ୟ କରିବାକୁ ପଦଯାତ୍ରା କଲେ । ହଜାର ହଜାର ନରନାରାୟଣଙ୍କ



ସମକ୍ଷରେ ସଂକଳ୍ପ କରିଗଲେ, ଲୁଣ ଟିକସ ନ ଉଠିଲେ ମୁଁ ଆଉ ଏ ଆଶ୍ରମ ମାଟି ମାଡ଼ିବି ନାହିଁ ।

ସାମାନ୍ୟ ଲୁଣ ପାଇଁ ଲଢ଼େଇ ! ବଡ ବଡ଼ ଓକିଲ ବାରିଷ୍ଟର ସୁଦ୍ଧା କଥାଟା ହସରେ ଉଡାଇ ଦେଲେ । ସରକାର କହିଲେ, ହାତୀ ଚାଲେ ବଜାରେ, କୁକୁର ଭୁକେ ହଜାରେ । ମହାତ୍ମାଗାନ୍ଧୀଙ୍କ ସାଂଗସାଥୀ ପଣ୍ଡିତ ମୋତିଲାଲ ନେହରୁ

ପ୍ରଭୃତିଙ୍କ ଆଖିରେ ମଧ୍ୟ ଅବିଶ୍ୱାସର ଦୃଷ୍ଟି—ଏଇଥିରେ ଦେଶରେ କି ଆନ୍ଦୋଳନ ହେବ ? ସତ୍ୟାଗ୍ରହ ଆଶ୍ରମଠାରୁ ସମୁଦ୍ରକୂଳ ଦୁଇଶହ ମାଇଲ ଦୂର । ଗାନ୍ଧିଜୀ ଚବିଶ ଦିନ ବାଟ ଚାଲି ଚାଲି ସମୁଦ୍ର କୂଳ ଗାଁ ଦାଣ୍ଡୀରେ ପହଞ୍ଚିଲେ । ବାଟ ଚାଲିବା ବେଳେ ଈଶ୍ୱର ଭଜନ ସେମାନଙ୍କର ରଣସଂଗୀତ ହୋଇଥାଏ । କାନ୍ଧରେ ଝୁଲମୁଣି ଓହଳାଇ ସେମାନେ ଭଜନ ବୋଲି ଚାଲିଥାନ୍ତି –

"ଶୂର୍ ସଂଗ୍ରାମକୋ ଦେଖ୍ ଭାଗେ ନହୀଁ
ଯୋ ଭାଗେ ସୋ ଶୂର୍ ନହୀଁ ।"

[ବୀର ସଂଗ୍ରାମକୁ ଦେଖି ପଳାଏ ନାହିଁ, ଯେ ପଳାଏ ସେ ବୀର ନୁହେଁ । ] ସେମାନେ ବାଟରେ ସଞ୍ଜସକାଳେ ପ୍ରାର୍ଥନା କରୁଥାନ୍ତି, ସୂତା କାଟୁଥାନ୍ତି । ସଭାରେ ମଦ ଛାଡ଼ିବାକୁ, ଅସ୍ପୃଶ୍ୟତା ନ ମାନିବାକୁ, ଆଳସ୍ୟ ଛାଡ଼ି-ବାକୁ, ସୂତା କାଟିବାକୁ ଲୋକଙ୍କୁ ବୁଝାଉଥାନ୍ତି । ମହାତ୍ମାଗାନ୍ଧୀଙ୍କୁ ଦେଖିବାକୁ ତାଙ୍କ କଥା ଶୁଣିବାକୁ ଲୋକ ସମୁଦ୍ର ଲହଡ଼ି ପରି ହଜାର ହଜାର ସଂଖ୍ୟାରେ ମାଡ଼ି ଆସୁଥାନ୍ତି । ବାଟଯାକ ଲୋକେ ତୋରଣ ବାନ୍ଧି, ଜାତୀୟ ପତାକା ଉଡ଼େଇ ସଡ଼କରେ ଧୂଳି ମାରିବାକୁ ପାଣି ସିଞ୍ଚି ଦେଇଥାନ୍ତି । କୀର୍ତ୍ତନ କରି ପାଛୋଟି ନେଉଥାନ୍ତି । ଦାଣ୍ଡୀରେ ପହଞ୍ଚିବା ବେଳକୁ ହଜାର ହଜାର ଲୋକଙ୍କ ଭିତରେ ସେ ଅଠସ୍ତରି ଜଣ ସାଥୀ କୁଆଡ଼େ ହଜି ଗଲେଣି । ଯେଉଁ ବଡ଼-ବଡ଼ିଆ ଲୁଣ ଟିକସ ଅମାନ୍ୟ କରିବାଟାକୁ ଅବହେଳା କରୁଥିଲେ ସେହିମାନେ ଲୋକଙ୍କର ଏ ଉତ୍ସାହ ଉନ୍ମାଦନା ଦେଖି ତାଟକା ହୋଇଗଲେ । ପଣ୍ଡିତ ଜବାହାରଲାଲ ନେହରୁ ସେତେବେଳେ ଟୋକା । ସେ ନିଜେ ଲେଖିଲେ ଯେ

ଲୁଣ ଆଇନ୍ ଅମାନ୍ୟ କଥା ଶୁଣି ମୋ ମଧ୍ୟରେ ଯେଉଁ ଅବିଶ୍ବାସ, ନିରାଶା ସୃଷ୍ଟି ହୋଇଥିଲା, ଦାଣ୍ଡୀ-ଯାତ୍ରା ଦୃଶ୍ୟ ଦେଖି ସେ ସବୁ ଉଭେଇ ଗଲା ।

ଏଣେ ସହରର ପାଠୋଇ ଓ ଗାଁଗହଳର ଅପାଠୋଇ ଝିଅବୋହୂ ମହାତ୍ମାଗାନ୍ଧୀଙ୍କୁ ଘେରିଗଲେ । ଆମେ ମଧ୍ୟ ସତ୍ୟାଗ୍ରହ ଯୁଦ୍ଧରେ ଲଢ଼ିବୁ । ଆପଣ କହୁଛନ୍ତି ଏ ଯୁଦ୍ଧରେ ଦେହ ବଳ, ଅସ୍ତ୍ର ବଳ ଲୋଡ଼ାନାହିଁ, ଆତ୍ମବଳ, ଅହିଂସାର ବଳ ଦରକାର । ଆମର ସେ ବଳ ଅଛି । ଆମେ ସବୁ ଦୁଃଖକଷ୍ଟ



ସହିବୁ । ଆମକୁ ସାଙ୍ଗରେ ନିଅନ୍ତୁ । ଗାନ୍ଧିଜୀ କହିଲେ ତୁମେମାନେ ଆଗେ ବିଦେଶୀ ଜିନିଷ ବର୍ଜନ ଓ ନିଶାନିବାରଣ କାମ କରି ମଦ ଓ ବିଲାତୀ ଲୁଗାରୂପୀ ପାପକୁ ହଟାଅ । ଗାନ୍ଧିଜୀଙ୍କ ସହଧର୍ମିଣୀ ଶ୍ରୀମତୀ କସ୍ତୁରବାଈ ଗାନ୍ଧୀଙ୍କ ନେତୃତ୍ବରେ ଶହଶହ ସ୍ତ୍ରୀଲୋକ ମଦ କାରବାର ବନ୍ଦ କରିବାକୁ ସୁରତ ଜିଲ୍ଲାର ଗାଁଏ ଗାଁଏ ବୁଲିଲେ । ସେ ଜିଲ୍ଲାର ମଦ କାରବାର ବହୁତ କମିଗଲା । ସରକାର ସେମାନଙ୍କୁ କାହାର ଘରେ ରଖେଇ ଦେଲେ ନାହିଁ । ସେମାନେ ଗାଁମୁଣ୍ଡରେ

ମିନ୍ଦୁଆ ଟାଙ୍ଗି ରହି କାମ କଲେ । ସରକାର ମିନ୍ଦୁଆଙ୍କୁ ପୋଡ଼ି ଦେଲେ, ରନ୍ଧା ବାସନ ଜବତ କରି ଆନାଙ୍କୁ ନେଇଗଲେ । ସେମାନେ ଗଛମୂଳେ ରହି ମାଟି ହାଣ୍ଡିରେ ରାନ୍ଧି ଖାଇ ସେ ହାଣ୍ଡିକୁ ଗଛରେ ଶିକାରେ ଟାଙ୍ଗି ଦେଇ ଗାଁଏ ଗାଁଏ ବୁଲିଲେ । ପୁଲିସର ନିର୍ଯ୍ୟାତନା ଯେତିକି ବଢ଼ିଲା, ସେମାନଙ୍କ ସାହସ ସେତିକି ବଢ଼ିଲା । ସେ ସାହସ ସାରା ଭାରତରେ ସଂକ୍ରମିତ ହେଲା । ସ୍ତ୍ରୀଲୋକଙ୍କ ଦେଶ-ପ୍ରୀତି, ଦେଶ ପାଇଁ ଆତ୍ମତ୍ୟାଗ ଦେଖି ଲୋକେ ତାଟକା ହେଲେ ।

ଦାଣ୍ଡୀରେ ଏପ୍ରିଲ୍ ଛଅ ତାରିଖ ଦିନ ମହାତ୍ମାଗାନ୍ଧୀ ପାହାନ୍ତ ପ୍ରାର୍ଥନା ଶେଷ କରି ସମୁଦ୍ରକୂଳକୁ ଗଲେ । ସମୁଦ୍ରରେ ବୁଡ଼ ପାରି ଆସି ସେ ପ୍ରଥମେ ସମୁଦ୍ର କୂଳରେ ଗଦା ହୋଇଥିବା ଲୁଣରୁ ମୁଠାଏ ଲୁଣ ଉଠେଇ ନେଲେ । ସେହି ଲୁଣ ଟିକକ ଷୋଳ ଶହ ଟଙ୍କାରେ ନିଲାମ ହେଲା । ତାହାପରେ ସେ ଭାରତର ଘରେ-ଆଡ଼େ ଲୁଣ ଆଇନ୍ ଅମାନ୍ୟ କରିବାପାଇଁ ନିର୍ଦ୍ଦେଶ ଦେଲେ । ଦାଣ୍ଡୀକୁ ଲାଗିଥିବା ସମୁଦ୍ରକୂଳିଆ ଗାଁମାନଙ୍କରେ ଲୋକେ ଲୁଣ ଆଇନ୍ ଅମାନ୍ୟ କରି ଲୁଣ ସାଉଁଟିବା ଆରମ୍ଭ କଲେ । ପୁଲିସ ଯେତେ ଅତ୍ୟାଚାର କଲେ, ମାଡ଼ ମାରିଲେ, ଗାଳିଗୁଲଜ କଲେ ଲୋକେ ଆଦୌ ଡରିଲେ ନାହିଁ । ସ୍ତ୍ରୀଲୋକମାନେ ଛୁଆ ପିଲା କାଖେଇ କରି ଯାଇ ଲୁଣ ସାଉଁଟିଲେ । ଲୋକଙ୍କ ଉପରେ ପୁଲିସର ଅତ୍ୟାଚାରର ପ୍ରତି-ବାଦ କରି ଦିଲ୍ଲୀ ଆସେମ୍ବ୍ଲିର ସଭାପତି ଶ୍ରୀ ବିଟ୍ଠଲ ଭାଇ ପଟେଲ୍ ଆସେମ୍ବ୍ଲି ସଦସ୍ୟ ପଦରୁ ଇସ୍ତଫା ଦେଲେ । ମହାମାନ୍ୟ ମଦନମୋହନ ମାଲବୀୟ ଓ ଆଉ କେତେ ଭଲ ଭଲ ଲୋକ ଆସେମ୍ବ୍ଲି ସଦସ୍ୟ ପଦରୁ ଇସ୍ତଫା ଦେଇ ଆସି ଲୁଣ ଆଇନ୍ ଅମାନ୍ୟ କଲେ । ହିମାଳୟରୁ କୁମାରିକା ଯାଏ ସାରା ଭାରତରେ ଚହଳ

ପଡ଼ିଗଲା । ଓଡ଼ିଶା, ବଙ୍ଗଳା, ବିହାର, ଯୁକ୍ତପ୍ରଦେଶ, ମାନ୍ଦ୍ରାଜ, ଯେଉଁଠେ ଗୃହଁ ସେଠେ ଲୁଣ ମରା ଚାଲିଛି । ତା ସାଙ୍ଗକୁ ଧରପଗଡ, ପୁଲିସ ଅତ୍ୟାଚାର ମଧ୍ୟ ଚାଲିଛି । କିନ୍ତୁ ସତ୍ୟାଗ୍ରହୀ ସଂକଳ୍ପରୁ ଟଳୁ ନାହାନ୍ତି ।

ଗାନ୍ଧିଜୀ ପୁଣି କହିଲେ, ପାଣି ପବନ ପରି ଏ ଦେଶର ସବୁ ଲୁଣ ଲୋକଙ୍କର । ତେଣୁ ସରକାରୀ ଲୁଣ ଗୋଲାରେ ଯେଉଁ ଲୁଣ ମହଜୁଦ ଅଛି ସେ ଲୁଣ ମଧ୍ୟ ଆମେ ଦଖଲ କରିବୁ । ଏହା ଶୁଣି ସରକାର ଗାନ୍ଧିଜୀଙ୍କୁ ଗିରଫ କରିନେଲେ । ଶ୍ରୀମତୀ ସରୋଜିନୀ ନାଇଡୁଙ୍କ ନେତୃତ୍ୱରେ ସତ୍ୟାଗ୍ରହୀମାନେ ଧରାଷଣା ଲୁଣ ଗୋଲା ଦଖଲ କରିବାକୁ ଗଲେ । କଣ୍ଟାତାର ଘେରା ଲୁଣଗୋଲା ପାଖକୁ ଯିବା ମାତ୍ରେ ସିପାହୀମାନେ ସେମାନଙ୍କ ମୁଣ୍ଡରେ ଠେଙ୍ଗା ପାହାର ଦେଲେ । ତଥାପି ଜଣେ ସୁଦ୍ଧା ସତ୍ୟାଗ୍ରହୀ ହାତ ଟେକୁ ନଥାନ୍ତି । ଧୀରସ୍ଥିର ରହି ଆଗେଇବାକୁ ଚେଷ୍ଟା କରୁଥାନ୍ତି । ଠେଙ୍ଗା ପାହାରରେ ମୁଣ୍ଡ ଫାଟି ବେହୋସ ହୋଇ ତଳେ ପଡ଼ିଗଲେ, ଆଉ ଦଳେ ସତ୍ୟାଗ୍ରହୀ ଯାଇ ତାଙ୍କ ସ୍ଥାନ ପୂରଣ କରନ୍ତି । ସେମାନେ ଧରାଶାୟୀ ହେଲେ ଆଉ ଦଳେ ଯାଆନ୍ତି । ବୈଶାଖ ମାସ [ମଇ ୨୧, ୧୯୩୦] ଖରା । ଠେଙ୍ଗା ପାହାରରେ ମୁଣ୍ଡ ଫାଟୁଥାଏ । ତଥାପି କାହାର ମୁହଁରେ ଉଁ ଚୁଁ ଶବ୍ଦ ନାହିଁ । ଦିନେ ୩୨୦ଜଣ ସତ୍ୟାଗ୍ରହୀଙ୍କର ମୁଣ୍ଡ ଫାଟିଲା, ଦୁଇଜଣଙ୍କର ପ୍ରାଣ ଗଲା । ବିଦେଶୀ ସାମ୍ବାଦିକମାନେ ଏ ଦୃଶ୍ୟ ଦେଖି ସ୍ତମ୍ଭୀଭୂତ ହେଲେ । ବିଦେଶୀ ଖବରକାଗଜମାନଙ୍କରେ ଏ ଖବର ଛପା ହେଲା । ସାରା ପୃଥିବୀରେ ଚହଳ ପଡ଼ିଗଲା । ସବୁ ଦେଶର ସାଧୁସଜ୍ଜନ ଇଂରେଜ ସରକାରଙ୍କର ଏହି ନିର୍ମମ ଅତ୍ୟାଚାରକୁ ନିନ୍ଦା କଲେ ।

ପୁଣି ଗାନ୍ଧିଜୀ ଗିରଫ ହେବା ଖବର ପାଇ ସୋଲାପୁରର କାରଖାନା ଶ୍ରମିକ ହରତାଳ କଲାରୁ ସେମାନଙ୍କ ଉପରେ ଗୁଳି ଚାଳିଲା । ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରେ ଖାନ୍ ଅବଦୁଲ ଗଫର ଖାନ୍ ଗିରଫ ହେଲାରୁ ତାଙ୍କ ସାଥୀ ଖୁଦାଇ୍ଖି ଖିଦ୍‌ମତ୍‌ଗାରମାନେ ଶୋଭାଯାତ୍ରା କଲାରୁ ଗୋରା ଅଫିସର ଶୋଭା-ଯାତ୍ରାକାରୀଙ୍କ ଉପରେ ଗୁଳି ଚଳାଇବାକୁ ହୁକୁମ ଦେଲେ । ନିର୍ଦ୍ଦୋଷ ନିରସ୍ତ୍ର ପଠାନ୍‌ଙ୍କ ଉପରେ ଗୁଳି ଚଳାଇବାକୁ ଗଢ଼ଓ୍ୱାଲୀ ସୈନ୍ୟବାହିନୀ ମନା କରି-ଦେଲେ । ପୁଣି ଗୋରା ସୈନ୍ୟ ଡକାଇ ଆଣି ସେହି ପଠାନ୍‌ଙ୍କ ଉପରେ ଗୁଳି ଚାଳନା କରିବାକୁ ଆଦେଶ ଦେଲେ । ସେମାନେ ସେହି ଗୁଳି ଆଗରେ ଛାତି ପତେଇ ଦେଲେ । ଜଣକର ସୁଦ୍ଧା ପିଠିରେ ଗୁଳି ବାଜି ନଥିଲା । ସେହି ଗଢ଼-ଓ୍ୱାଲୀ ସୈନ୍ୟମାନେ ମଧ୍ୟ ଆଦେଶ ଅମାନ୍ୟ କରିବା ଅପରାଧରେ ଦଣ୍ଡ ପାଇଲେ । ସରକାର କଂଗ୍ରେସକୁ ବେଆଇନ୍ ଘୋଷଣା କରିଦେଲେ । ଏତେ ଲୋକଙ୍କୁ ଗିରଫ କଲେ ଯେ ଭାରତବର୍ଷର ସବୁ ଜେଲ୍ ଭରିଛି ହୋଇଗଲା । ବର୍ଷା ହେବାରୁ ଲୁଣ ମାରି ହେଲାନାହିଁ । ସତ୍ୟାଗ୍ରହୀମାନେ ବିଲାତୀ ଲୁଗା ଦୋକାନ, ମଦ ଗଞ୍ଜେଇ ଅଫିମ ଦୋକାନରେ ପିକେଟିଂ କରି ଲୋକଙ୍କୁ ବିଲାତୀ ଲୁଗା ନ କିଣିବାକୁ, ନିଶା ନ ଖାଇବାକୁ ବୁଝାଇଲେ । ସରକାର ଏହି ସତ୍ୟାଗ୍ରହୀଙ୍କ ଉପରେ ମଧ୍ୟ ନିର୍ମମ ଅତ୍ୟାଚାର କଲେ । ସେମାନଙ୍କୁ ବେତମାଡ଼ ଦଣ୍ଡ ଦେଲେ । ତଥାପି ସେମାନେ ଦବିଲେ ନାହିଁ । ସରକାର ବୁଝିଲେ ଯେ ଏ ସତ୍ୟାଗ୍ରହ ଯୁଦ୍ଧ କିଛି ଥଟ୍ଟା ତାମସା ନୁହେଁ । ସତ୍ୟାଗ୍ରହ ଆରମ୍ଭ ହେବାର ବର୍ଷେ ପୂରା ନ ପୂରୁଣୁ ଭାରତର ବଡଲାଟ୍ ଲର୍ଡ ଆର୍‌ଉଇନ୍ ଗାନ୍ଧିଜୀଙ୍କ ସହିତ ମିଳାମିଶା କରିବା ପ୍ରସ୍ତାବ ଦେଇ ଜେଲ୍‌କୁ ଲୋକ ପଠାଇଲେ । ଗାନ୍ଧିଜୀ

କହିଲେ, କଂଗ୍ରେସର କାର୍ଯ୍ୟକାରୀ କମିଟି ସଂଗେ କଥାବାର୍ତ୍ତା ନ କରି ମୁଁ କିଛି କହି ପାରିବି ନାହିଁ । ଗାନ୍ଧିଜୀଙ୍କୁ ଓ କମିଟି ସଦସ୍ୟଙ୍କୁ ସରକାର ଜେଲ୍‌ରୁ ମୁକୁଳାଇ ଦେଲେ । ସଂଧି ବିଷୟରେ କଥାବାର୍ତ୍ତା କରିବାକୁ ଖଣ୍ଡେ ଆଣ୍ଠୁ ଲୁଚୁ ନଥିବା ଧୋତି ପିନ୍ଧି ଚଦ୍ଦମୀ ଖଣ୍ଡେ କାନ୍ଧରେ ପକେଇ ଗାନ୍ଧିଜୀ ବଡଲାଟଙ୍କୁ ଭେଟିଲେ । ଏହା ଦେଖି ବିଲାତର ଜାଠଦଳ ନେତା ଚର୍ଚ୍ଚିଲ୍ ସାହେବ ରାଗରେ ଗର୍ଜନ କରି କହିଲେ— ବାରିଷ୍ଟରଟାଏ, ଏବେ ହୋଇଛି ରାଜଦ୍ରୋହୀ ଫକୀର ! ସେ ପୁଣି ଆଣ୍ଠୁ ଉପରକୁ ଲୁଗାପିନ୍ଧି ବଡଲାଟ ଭବନର ପାହାଚ ଚଢ଼ିଚଢ଼ି ମୁଣ୍ଡଟେକି ଯାଉଛି ! ଇଂଲଣ୍ଡର ମହାମହିମ ସମ୍ରାଟଙ୍କର ପ୍ରତିନିଧିଙ୍କ ସାଂଗରେ ସମାନସ୍କନ୍ଧ ହୋଇ କଥାବାର୍ତ୍ତା କରିବ ! ବ୍ରିଟିଶ ଜାତି ପକ୍ଷରେ କି ଘୃଣ୍ୟ, ଅପମାନଜନକ ଦୃଶ୍ୟ !

ସତ୍ୟର ହିଁ ଜୟ ହେଲା । ଉତ୍କଳମଣି ଗୋପବଂଧୁ କହିଯାଇଥିଲେ ପରା —

ଅନ୍ୟାୟ ଅସତ୍ୟ ପାପ ଅତ୍ୟାଚାର,
ମାନେ ଅବଶେଷେ ସତ୍ୟ ପାଖେ ହାର ।

ଗାନ୍ଧୀ-ଆର୍ ଉଇନ୍ ସନ୍ଧିପତ୍ର ସ୍ୱାକ୍ଷରିତ ହେଲା । ସମୁଦ୍ର କୂଳରେ ଲୁଣ ମାରିବାର ଅଧିକାର ମିଳିଲା । ଭାରତ ବ୍ରିଟିଶର ସମସ୍କନ୍ଧ ଜାତି ରୂପେ ବିଶ୍ୱ ଦରବାରରେ ମୁଣ୍ଡ ଟେକି ଛିଡା ହେଲା । ଦାଣ୍ଡୀଯାତ୍ରା, ମଥୁରା-ବିଜୟ, ଲଙ୍କା-ବିଜୟ ପରି ଚିରଦିନ ଲାଗି ମନେ ରହିବ ।

—o—

# ଶମ୍ଭୁ ଶତପଥୀ ବାଡ଼ି

ବାଲେଶ୍ୱର ସହରର ବଙ୍କା ଖଜୁରୀଠାରୁ ଯେଉଁ ନମ୍‌କୀ ସଡ଼କ ବା ସଲ୍‌ଟ ରୋଡ୍ ସୋରୋ ଅନନ୍ତପୁର ଆଡ଼କୁ ଲମ୍ବି ଯାଇଛି, ସେହି ସଡ଼କରେ ପ୍ରାୟ ଦଶ କିଲୋମିଟର ଯାଇ ବାଟ ଭାଂଗି ଗଲେ କହବା, ରସାଲପୁର, ଭୁଣ୍ଡରା, ଇଞ୍ଚୁଡ଼ି ଆଦି ଗାଁ ପଡ଼ିବ । ବାଲେଶ୍ୱରରେ ଜାହାଜାଡ଼ୀ କାରବାର ଓ ଲୁଣ ବ୍ୟବସାୟ ଚାଲିଥିଲା ବେଳେ ଏହି ଗାଁଗୁଡ଼ିକ ଖୁବ୍ ସମୃଦ୍ଧିଶାଳୀ ଥିଲା । ଇଂରେଜ ସରକାର ଲୁଣଟିକସ ବସାଇବା ପରେ ଗାଁଗୁଡ଼ିକର ଅବସ୍ଥା କ୍ରମେ ଖରାପ ହେବାକୁ ଲାଗିଲା । ତଥାପି ଲୋକେ ନିଜ ସଂସ୍କାର ରକ୍ଷା କରି ଅତିଥି ଅଭ୍ୟାଗତ ଚର୍ଚ୍ଚାରୁ ବିରତ ହୋଇ ନ ଥାନ୍ତି । ସେହି ଗାଁମାନଙ୍କ ମଧ୍ୟରୁ ଗୋଟିଏ ଗାଁ ଭୁଣ୍ଡରାରେ ଦିନେ ଚାରି ଜଣ ଅଭ୍ୟାଗତ ଆସି ପହଞ୍ଚିଲେ । ସେମାନେ ଆସିବେ ବୋଲି ଗାଁ ଲୋକେ ଆଗରୁ ଖବର ପାଇଥିଲେ । ସେଥିପାଇଁ ଗାଁର ଶମ୍ଭୁ ଶତପଥୀଙ୍କ ବାଡ଼ିରେ ସେମାନଙ୍କ ରହିବାପାଇଁ ବାଉଁଶ ଚାଳିଆ ତିଆରି ହୋଇ-ଥିଲା । ଗାଁ ଲୋକେ ଚାନ୍ଦାଭେଦା କରି ଡାଲି ଚାଉଳ ପରିବା ମଧ୍ୟ ଯୋଗାଡ଼ କରି

ରଖିଥାନ୍ତି । ଅଭ୍ୟାଗତମାନେ ପହଞ୍ଚିବା ମାତ୍ରେ ଗାଁ ଲୋକେ ସେମାନଙ୍କୁ ଗାଁମୁଣ୍ଡରୁ ଫୁଲଚନ୍ଦନ ଦେଇ କୀର୍ତ୍ତନ କରି ପାଛୋଟି ଆଣିଲେ । ଗାଁ ଭିତରେ ପଶିବା ମାତ୍ରେ ଶଙ୍ଖଧ୍ୱନି ଓ ହୁଳହୁଳି ଶବ୍ଦରେ ଲୋକଙ୍କ କାନ ଅତଡ଼ା ପଡ଼ିଲା । ଆଖପାଖ ଗାଁ ଲୋକେ ଧାଇଁ ଧାଇଁ ଆସି ଶମ୍ଭୁ ଶତପଥୀଙ୍କ ବାଡ଼ି ପାଖରେ ଜମା ହୋଇଗଲେ । ଲାଲ୍‌ପଗଡ଼ିଆ ପୁଲିସ ମଧ୍ୟ ଗାଁ ସଡ଼କରେ ପଇଁତରା ମାରିବାକୁ ଲାଗିଲେ ।



ରାତି ପାହିଲେ ପଣା ସଂକ୍ରାନ୍ତି । ଏହି ମହା ପବିତ୍ର ଦିନରେ ପୁଣ୍ୟବନ୍ତ ଲୋକେ ଠାଆକୁ ଠାଆ ଜଳ ଛତ୍ର ଦେବେ । ଘରେଘରେ ତୁଳସୀ ଚଉରା ଉପରେ ଛାମୁଡ଼ିଆ ହୋଇ ବସନ୍ତରା ଘଡ଼ି ବସିବ । ଛତୁ, ଗୁଡ଼, କଦଳୀ, ନଡ଼ିଆ, ଛେନା, ଦୁଧ, ଦହି ଗୋଳାହୋଇ ଆମ୍ବକଶି ଅଦା କଷ୍ଟା ହୋଇ ପଡ଼ି ପଣା ତିଆରି ହୋଇ ଭୋଗ ଲାଗିବ । ନାନା ଆୟୋଜନ, କିନ୍ତୁ ସେ ସବୁ କାମରେ ଆଜି କାହାରି ମନ ନାହିଁ । ସମସ୍ତଙ୍କ ମନଧ୍ୟାନ ସେହି ଶମ୍ଭୁ ଶତପଥୀ ବାଡ଼ିରେ ।

ସେହି ଅଭ୍ୟାଗତମାନେ କଅଣ କରୁଛନ୍ତି, କଅଣ କହୁଛନ୍ତି, ସେହିକଥା ପିଲାଠାରୁ ବୁଢ଼ାଯାଏ ଭୁଣ୍ଡ ହୋଇ ଶୁଣୁଛନ୍ତି । ରାତି ପାହିଲେ ସେମାନେ ଇଞ୍ଚୁଡ଼ି ଚଟାଣକୁ ଯାଇ ଲୁଣ ମାରିବେ ବୋଲି ଢ଼ିଙ୍ଗୁରା ଦିଆ ସରିଛି । କଅଣ ଗୋଟାଏ ଅଘଟଣ ଘଟିବ ବୋଲି ସମସ୍ତେ ଉତ୍ସୁକ ହୋଇ ରହିଛନ୍ତି, କାହାରି ଆଖିରେ ନିଦ ନାହିଁ ।

ରାତି ପାହିଲା । ଅଭ୍ୟାଗତମାନେ ପାହାନ୍ତାରୁ ଉଠି ନିତ୍ୟକର୍ମ ସାରି ହରି-ସ୍ମରଣ କରି ଶମ୍ଭୁ ଶତପଥୀ ବାଡ଼ିକୁ ଅନୁକୂଳ କରି ବାହାରିଲେ । ସେମାନଙ୍କ ସାଂଗରେ ଶହଶହ ଗାଁ ଲୋକ ଚାଲିଥାନ୍ତି । ପୁଲିସ ମଧ୍ୟ ରହିଥାନ୍ତି । ଏହି ଅଭ୍ୟା-ଗତଙ୍କ ଅଗ୍ରଣୀ ହେଉଛନ୍ତି ଆଚାର୍ଯ୍ୟ ହରିହର ଦାସ । କଟକରୁ କୋଡ଼ିଏ ଜଣ ସତ୍ୟାଗ୍ରହୀ ଚାଲି ଚାଲି ଆସୁଥିଲେ ବାଲେଶ୍ୱରର ଇଞ୍ଚୁଡ଼ି ଚଟାଣକୁ ଲୁଣ ମାରି-ବାକୁ । ଜଣକୁ ବାଟରୁ ସରକାର ଗିରଫ କରି ନେଇଛନ୍ତି, ବାକି ଉଣେଇଶ ଜଣ ବାଲେଶ୍ୱରରେ ପହଞ୍ଚି ରହିଲେ ସେହି ପର୍‌ମିଟ୍ କୋଠିରେ ଯେଉଁଠି ସ୍ୱଦେଶୀ ବଣିକ ଓଡ଼ିଶାରେ ବଣିଜ କରିବାପାଇଁ ପ୍ରଥମେ ସନନ୍ଦ ପାଇଥିଲା । ସେହି ପରମିଟ୍ କୋଠିରୁ ଆଚାର୍ଯ୍ୟ ମହାଶୟ ବାର ଜଣ ବଛାବଛା ସତ୍ୟାଗ୍ରହୀ ଗୋଲକ ବିହାରୀ ଦେ, ବିଶ୍ୱନାଥ ହୋତା, ମୁରାରୀ ତ୍ରିପାଠୀ, ରଘୁନାଥ ମିଶ୍ର, ଦୁର୍ଗା ପ୍ରସାଦ ଗୁରୁ, ବିନୋଦ ଚୌଧୁରୀ, ଗୁଣନିଧି ମହାନ୍ତି, ଗୋକୁଳାନନ୍ଦ ମହାନ୍ତି, ସୁଧାଂଶୁ ମୋହନ ଗୁପ୍ତ, ରାମପ୍ରସାଦ ସାହୁ, ବନମାଳୀ ପଟ୍ଟି ଓ ଗୌରାଙ୍ଗ ଚରଣ ଦାସଙ୍କୁ ସାଂଗରେ ଧରି ଆସିଛନ୍ତି । ଆଚାର୍ଯ୍ୟ ମହାଶୟ ଆଗ ଲୁଣ ଆଇନ୍ ଅମାନ୍ୟ କରି ସତ୍ୟାଗ୍ରହ ଅନୁକୂଳ କରିବେ । ଗାନ୍ଧିଜୀ ଏପ୍ରିଲ୍ ଛଅ ତାରିଖ ଦିନ ଦାଣ୍ଡୀଠାରେ ଲୁଣ ଆଇନ୍ ଅମାନ୍ୟ କରି ସାରି ଏହି ଏପ୍ରିଲ୍ ତେର ତାରିଖ

ମହାବିଷୁବ ସଂକ୍ରାନ୍ତି ଦିନ ଭାରତର ଚାରିଆଡ଼େ ଲୁଣ ଆଇନ୍ ଅମାନ୍ୟ କରି-ବାକୁ ନିର୍ଦ୍ଦେଶ ଦେଇଛନ୍ତି ।

ଯାତ୍ରୀଦଳ ଇଞ୍ଚୁଡ଼ି ଚଷାଣରେ ପହଞ୍ଚିଲେ । ଆଚାର୍ଯ୍ୟ ମହାଶୟ ନଇଁପଡ଼ି ଲୁଣମାଟି ମୁଠାଏ ସାଉଁଟିବା ମାତ୍ରେ ପୁଲିସ ତାଙ୍କୁ ଗିରଫ କରିନେଲେ । ସେ ଗିରଫ ହେବାରୁ ବାକି ବାରଜଣ ସତ୍ୟାଗ୍ରହୀ ଲୁଣମାଟି ସାଉଁଟିବା ଆରମ୍ଭ କଲେ । ପୁଲିସ ସେମାନଙ୍କୁ ଗିରଫ ନ କରି ସେମାନଙ୍କ ହାତରୁ ଲୁଣମାଟି ଛଡ଼ାଇ ନେବାପାଇଁ ଚେଷ୍ଟା କଲେ । ମହାତ୍ମାଗାନ୍ଧୀ ନିର୍ଦ୍ଦେଶ ଦେଇଥାନ୍ତି—"ସତ୍ୟାଗ୍ରହୀ ହାତରେ ମୁଠାଇଥିବା ଲୁଣ ମୁଠାକ ହେଉଛି ଭାରତର ଆତ୍ମସମ୍ମାନର ପ୍ରତୀକ । ତେଣୁ ମୁଠା ପଡ଼ିଲେ ମୋଡ଼ିହୋଇ କଚଟି ହାତ ଭାଂଗିଯିବ, ସ୍ୱେଚ୍ଛାରେ ମୁଠା ଫିଟେଇ ଲୁଣ ଦେବା କଥା ନୁହେଁ । ଏହି ଲୁଣକୁ ମୁଠେଇ ରଖି ଆମ ଭାର-ତର ଛଅ କୋଟି ଟଙ୍କା ମୁଠେଇ ରଖିଛୁ । ଏଇଥିରେ ଭାରତର ସ୍ୱାଧୀନତା ଛପି ରହିଛି । ଆପଣଙ୍କ ଉପରେ ଗୁଳି ଗୋଳା ବା ଠେଙ୍ଗା ପାହାର ବର୍ଷୁ, ଆପଣଙ୍କ ମୁଠା କିନ୍ତୁ ଫିଟିବ ନାହିଁ ।" ଏହି କଥାକୁ ସ୍ମରି ସତ୍ୟାଗ୍ରହୀମାନେ ମୁଠା ଫିଟେଉ ନଥାନ୍ତି । ପୁଲିସ ତାଙ୍କ ବୁଢ଼ା ଆଙ୍ଗୁଠି ବଙ୍କେଇ କଚଟିକୁ ମୋଡ଼ି ମୁଠା ଫିଟାଇବାକୁ ନାନା ପ୍ରକାରେ ଚେଷ୍ଟା କରୁଥାନ୍ତି । ଜଣେଜଣେ ସତ୍ୟାଗ୍ରହୀଙ୍କ ମୁଠା ଫିଟାଇବାକୁ ପାଞ୍ଚ ଛଅ ଜଣ ଲେଖା ପୁଲିସ ଲାଗିପଡ଼ିଥାନ୍ତି । ତଥାପି ସତ୍ୟାଗ୍ରହୀ ଓଠ କାମୁଡ଼ି ମୁଠା ଭିଡ଼ି ରଖି ଥାଆନ୍ତି । ବିନୋଦ ଚୌଧୁରୀ ଜଣେ ବୁଢ଼ା ଲୋକ । ତାଙ୍କ ଘର କଟକ ଚୌଦ୍ୱାରରେ । ତାଙ୍କ ମୁଠା ଫିଟେଇ ନପାରି ପୁଲିସ ତାଙ୍କୁ ତଳେ ଗଡ଼େଇ ପକେଇ ବୁଟ୍ ପିନ୍ଧା ଗୋଡ଼ରେ ତାଙ୍କ ଉପରେ

ଚଢ଼ି ତାଙ୍କୁ ଦଳି ପକାଇଲେ । ଦେହ ଖଣ୍ଡିଆ ହୋଇ ରକ୍ତ ବୋହିଲା । ତଥାପି ସେ ମୁଠା ଫିଟାଇଲେ ନାହିଁ । ପାଖରେ ଠିଆ ହୋଇଥିବା ମୁନ୍‌ସି ବାବୁ ଏ ଦୃଶ୍ୟ ଦେଖିଲେ । ତାଙ୍କ ଆଖିରୁ ଧାରଧାର ଲୁହ ଗଡ଼ିଗଲା । ମଲେ ମରିବୁ ପଛେ, ଏ ଅନ୍ୟାୟ ଆଇନ୍‌କୁ ମାନିବୁ ନାହିଁ । ଯେତେ ଅତ୍ୟାଚାର ହେଉ ପଛେ ଆମେ ହାତ ଉଠେଇବୁ ନାହିଁ । ଏହି ପଣ କରି ସତ୍ୟାଗ୍ରହୀମାନେ ପ୍ରତିଦିନ ସକାଳ ଆଠଟାରୁ ଦିନ ବାରଟା ଓ ଉପରଓଳି ତିନଟାରୁ ସଂଧ୍ୟା ଛଅଟା ଯାଏ ସମୁଦ୍ର ପଠାକୁ ଯାଇ



ଲୁଣମାଟି ସଂଗ୍ରହ କଲେ । ପୁଲିସର ଶତ ବାଧା ସତ୍ତ୍ୱେ ଲୁଣମାଟି ସଂଗ୍ରହ କରି ଆଣି ଲୁଣ ମାରିଲେ । ସେ ଲୁଣ ଟୁରିଆଟେ ବିକ୍ରୀ ହେଲା । ଲୋକେ ସେ ଲୁଣ କିଣି ନେଇ ମହାପ୍ରସାଦ ଭଳି ମୁଣ୍ଡରେ ମାରିଲେ । ପୁଲିସ ସତ୍ୟାଗ୍ରହୀଙ୍କୁ ନାନା ପ୍ରକାରେ ଜବତ କରିବା ପାଇଁ ଚେଷ୍ଟା କରି ବିଫଳ ହେଲାରୁ ସେମାନଙ୍କୁ ଗିରଫ କଲେ । ମହାତ୍ମାଗାନ୍ଧୀ ନିର୍ଦ୍ଦେଶ ଦେଇଥାନ୍ତି, ପୁଲିସ ଗିରଫ କରିବା ମାତ୍ରେ ମୁଠା ଫିଟାଇ ଲୁଣମାଟି ପୁଲିସକୁ ଦେଇ ଦେବ । ସତ୍ୟାଗ୍ରହୀମାନେ ତାହାହିଁ କଲେ ।

ପୁଣି କଟକ ପୁରୀ ସମ୍ବଲପୁରରୁ ଦଳଦଳ ହୋଇ ସତ୍ୟାଗ୍ରହୀ ଯାଇ ସେଠାରେ ହାଜର ହୋଇ ଯାଉଥାନ୍ତି । ଶମ୍ଭୁ ଶତପଥୀ ବାଡ଼ର ବାଉଁଶ ଚାଳିଆ ଆଦୌ ଖାଲି ପଡ଼ୁ ନ ଥାଏ । ସେମାନେ ପଦଯାତ୍ରା କରି ଗୀତ ବୋଲି ବୋଲି ଆସନ୍ତି—

"ଆସରେ ଆଜି ଆସ, ଆଜି ଆସ
ଦରିଆ ଦଖଲ କରି ଯିବ କିଏ ଆସ ।"

ତାଙ୍କ ଗୀତରେ ଗାଁଗଣ୍ଡା ଗୁଞ୍ଜରି ଉଠୁଥାଏ, ଲୋକେ ଘରଦ୍ୱାର ଛାଡ଼ି ସେମାନଙ୍କ ସାଂଗରେ ମିଶି ଗୀତ ବୋଲି ଚାଲୁଥାନ୍ତି—

"କେତେ କାଳ ଏ ଅନୀତି ସହିବା ଭାଇ !
ଏ ଅନୀତିର ପ୍ରତିକାର କି କରିବ ନାହିଁ ?
ସମୁଦ୍ରେ ଲବଣ ଭରା
ଦେଇଛନ୍ତି ବିଧାତା ପରା
ମାରି ଖାଇବାର ଦାବୀ କି ଆମର ନାହିଁ ?
ଘର ପାଖେ ଥାଇ ଲୁଣ
ବିଦେଶୀ ଲୁଣକୁ କିଣ
ଏ କେଉଁ ରାଇଜ କଥା ଶୁଣିଛ ଭାଇ ?"

ଦୂରଦୂରାନ୍ତରୁ ଏହିପରି ଚାଲିଚାଲି ଆସୁଥିବା ସତ୍ୟାଗ୍ରହୀଙ୍କୁ ବାଟରେ ଲୋକେ ଠାଆକୁଠାଆ ଫୁଲମାଳ ଦେଇ କୀର୍ତ୍ତନ କରି ଅଭ୍ୟର୍ଥନା କରୁଥାନ୍ତି । ବାଲେଶ୍ୱରରେ ପହଞ୍ଚି ସେମାନେ ପରମିଟ୍ କୋଠିରେ ରହନ୍ତି ଓ ସେଠାରୁ ଦଳଦଳ ହୋଇ ଶମ୍ଭୁ ଶତପଥୀ ବାଡ଼ିକୁ ଆସି ବାଉଁଶ ଚାଳିଆରେ ରାତି କଟାଇ

ପରି ଧାନ ଲୁଣ ମାରନ୍ତି । ଲୋକେ ଏ ସବୁ ଦେଖିଲେ । ପୁଲିସଙ୍କ ଅତ୍ୟାଚାର ମଧ୍ୟ ଦେଖିଲେ । ଏ ଅତ୍ୟାଚାର, ଗିରଫଦାରୀ ଆଜି ଦେଖି ସେମାନେ ଡରିବା ଦୂରେ ଥାଉ, ପୁଲିସକୁ ଗାଁରେ ରହିବାକୁ ସ୍ଥାନ ଦେଲେ ନାହିଁ । ଦୋକାନୀ ସେମାନଙ୍କୁ ସଉଦା ମଧ୍ୟ ଦେଲେ ନାହିଁ । ପୁଣି ଲୋକଙ୍କ ମଧ୍ୟରେ କଥା ପଡ଼ିଲା, ଆମେ ମଧ୍ୟ ଲୁଣ ମାରିବୁ । ଏ ସତ୍ୟାଗ୍ରହ ଚଳାଇବାର ଦାୟିତ୍ୱ ଥାଏ ଗୋପବନ୍ଧୁ ଚୌଧୁରୀଙ୍କ ଉପରେ । ସେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି କାର୍ଯ୍ୟକାରୀ ସମିତିର ସଦସ୍ୟମାନଙ୍କ ସଙ୍ଗେ ପରାମର୍ଶ କରି ଲୋକଙ୍କୁ ଜଣାଇ ଦେଲେ ଯେ ଗାଁ ଲୋକେ ଚାହିଁଲେ ଲୁଣ ମାରି ପାରିବେ, ମାତ୍ର ପୁଲିସ ଯେତେ ଅତ୍ୟାଚାର କଲେ ସୁଦ୍ଧା ସେମାନଙ୍କୁ ଅହିଂସ ରହିବାକୁ ହେବ । ସେମାନଙ୍କୁ ଗିରଫ କରାଗଲେ ଜେଲ୍ ଯିବାକୁ ପ୍ରସ୍ତୁତ ରହିବାକୁ ହେବ । ଏହି ଅନୁମତି ମିଳିବା ମାତ୍ରେ କେବଳ ସାରଥା ଗାଁରୁ ସାତ ଶହ ଲୋକ ଆସି ଲୁଣ ମାରିଲେ । ଶ୍ରୀଜଙ୍ଗ, କଅଁରପୁର, ବୋଇତା, ରସାଳପୁର, ଭୁଣ୍ଡରା ଆଦି ଗାଁର ହଜାର ହଜାର ଲୋକ ଯେତେବେଳେ ଲୁଣ ମାରିଲେ, ପୁଲିସ ସେ ଅହିଂସ ଗଣଆନ୍ଦୋଳନର କି ପ୍ରତିରୋଧ କରନ୍ତେ ! ଯାହାଙ୍କୁ ମୁଖିଆ ଭାବିଲେ ତାହାକୁ ଗିରଫ କରିନେଲେ । ଯାହାଙ୍କ ମୁହଁରେ ସାହସ ଦେଖିଲେ ତାକୁ ମରାପିଟା କଲେ । ଲୁଣମାଟି ବୋହି ନେଇ ଗଲା ବେଳେ ଗୁଡ଼ିଆ ବରଗଛ ମୂଳରେ ଲାଠି ଚଳାଇ ସେମାନଙ୍କ ମୁଣ୍ଡ ଫଟାଇଲେ । ତଥାପି ଲୋକେ ଡରିଲେ ନାହିଁ । ଲୁଣ ମରା ଚାଲିଲା ।

ଏହାପରେ ପଡ଼ିଲା ସ୍ତ୍ରୀଲୋକଙ୍କ ପାଳି । ଶ୍ରୀମତୀ କିରଣବାଳା ସେନ୍, ରମା ଦେବୀ, ମାଳତୀ ଚୌଧୁରୀ ଯାଇ ପ୍ରଥମେ ଇଞ୍ଚୁଡ଼ି ଚଟାଣରେ ଲୁଣ ମାଟି ଆଣି

ଜାଲ ଭାଂଗି ଲୁଣ ମାରିଲେ । ତାହାପରେ ଗାଁରେ ବୁଲି ସ୍ତ୍ରୀଲୋକମାନଙ୍କୁ ଗୁଜରାଟର ଭଉଣୀମାନଙ୍କ ସାହସ କଥା ଶୁଣାଇଲେ । ସେ କଥା ଶୁଣି ଶହଶହ ସ୍ତ୍ରୀଲୋକ ଶଙ୍ଖ ବଜାଇ ହୁଳହୁଳି ପକାଇ ଲୁଣ ମାରିବାକୁ ବାହାରି ଆସିଲେ । ହଜାରହଜାର ଦେଖଣାହାରୀ ଜମା ହୋଇଥାନ୍ତି, ପୁଲିସ ଫଉଜ ପଇଁତରା ମାରୁଥାନ୍ତି, ବୋହୂ ଭୂଆସୁଣୀ ପଲପଲ ହୋଇ ଯାଇ ଲୁଣ ମାଟି ସାଉଁଟି ଲୁଣ ମାରୁଥାନ୍ତି । ସେ ଉତ୍ସାହ, ସେ ଉନ୍ମାଦନା ଯେ ଦେଖିଛି ତା ନେତ୍ର ପବିତ୍ର ହୋଇଛି ।

ଜାତୀୟ କବି ବୀରକିଶୋର ଗୀତ ଲେଖିଲେ —

"ଶୟନେ ସ୍ୱପନେ କିବା ଜାଗରଣେ, ସେହି ଗାନ୍ଧୀ କଥା ଭାବୁଛି,
କି ମନ୍ତ୍ରର କଲା ସଭିଙ୍କୁ ଟାଣିଲା ବଡ଼ ଆଚମ୍ବିତ ଲାଗୁଛି ।
ଶୁଣି ଯେ ଡରଇ ମେଘ ଘଡଘଡ଼ି
ବାହାରି ନ ଥିଲା ଘରୁ ଗୋଡ଼ କାଢ଼ି
ସେହି ନାରୀ ଆଜି ସମୁଦ୍ର ପନ୍ତାରେ ଲୁଣ ଲାଗି ଜାଲ ଭାଂଗୁଛି
ତେତାଲା ଉପରେ ବିଳାସରେ ଶୋଇ
ଅଳସେ ଯେ ଧନୀ ମାରୁଥିଲେ ହାଇ
କତା ପିଟୁଛନ୍ତି ଯୋତା ମାଡ ଖାଇ ଜୀବନକୁ ଦେଇ ମୂରୁଛି,
ଶୟନେ ସ୍ୱପନେ କିବା ଜାଗରଣେ ସେହି ଗାନ୍ଧୀ କଥା ଭାବୁଛି ।"

ପ୍ରଥମ ମେଘ ଅସରାଏ ବରଷିଗଲେ ଓଦା ମାଟିର ସେ ପୁଣ୍ୟ ଗନ୍ଧ ଯେପରି ଦୂରଦୂରାନ୍ତକୁ ମହକାଇ ଦିଏ, ଇଞ୍ଚୁଡ଼ିର ବୀର କାହାଣୀ ସେହିପରି ସାରା

ଓଡ଼ିଶାକୁ ଆମୋଦିତ କରିଦେଲା । କୁଜଂଗ ରାଣୀ, ରମା ଦେବୀ ଓ ମାଳତୀ ଦେବୀଙ୍କ ନେତୃତ୍ୱରେ କଟକ ଜିଲ୍ଲାର କୁଜଂଗରେ ଲୁଣ ମରା ଆରମ୍ଭ ହୋଇ-ଗଲା । ପତିତପାବନ ସେନାବାହିନୀ ପୁରୀରୁ ଅସ୍ତରଙ୍ଗ ଯାଇ ଲୁଣ ମାରିଲେ । ଗଞ୍ଜାମରେ ଶ୍ରୀମତୀ ସରଳା ଦେବୀ ହୁମା ସରକାରୀ ଲୁଣଗୋଲା ଦଖଲ କରି-ବାକୁ ସଦଳବଳେ ଯାଉଥିବା ବେଳେ ପୁଲିସ ଅଜାଗାରେ ରେଳ ଅଟକାଇ ସେମାନଙ୍କୁ ଗିରଫ କଲେ । ଚୌରିଆଡ଼େ ସତ୍ୟାଗ୍ରହ ଲୁଣ ବିକ୍ରୀ କରି ସତ୍ୟାଗ୍ରହୀମାନେ ଗିରଫ ହେଲେ । ଯେଣେ ଯିବ ତେଣେ ଶୁଣିବ ପିଲାଏ ଗୀତ ବୋଲୁଛନ୍ତି —

"ଲୁଣ ମାରିବାକୁ ଚାଲ
ଭାଇ ! ମହାତ୍ମା ଆଦେଶ ପାଳ ହେ
ଲୁଣ ମାରିବାକୁ ଚାଲ ।"

—o—

# ବଇଦୀ ମହାନ୍ତି ଝୁଙ୍ଗୀ

କୁଜଂଗକୁ ଲଗି ପାଟପୁର ଗାଁ । ପଚାଶ ବର୍ଷ ପୂର୍ବେ ପାଟପୁର ଗାଁରେ ଥିଲା ବଇଦୀ ମହାନ୍ତ ଝୁଙ୍ଗୀ । ବଇଦୀ ମହାନ୍ତ ପୁରୁଖା ଲୋକ । ଝୁଙ୍ଗୀରେ ସେ ଏକା ରହନ୍ତି । ବୋଲକରାମାନେ ରନ୍ଧାବଢ଼ା ବୋଲହାକ କରନ୍ତି । ସେହି ଝୁଙ୍ଗୀରେ ଆଜି ଟିକିଏ ଗହଳ ଲାଗିଛି । ରାତି ଅଧ ହେଲାଣି । ବଇଦୀ ମହାନ୍ତ ଶୋଇ ସାରିଲେଣି । ଝୁଙ୍ଗୀ ଭିତରେ ଦୁଇ ଜଣ ଯୁବତୀ, ଜଣେ ଦାଢ଼ିବନ୍ତ ଯୁବକ, ଆଉ ଜଣେ ଚନ୍ଦା ମୁଣ୍ଡିଆ ପ୍ରୌଢ଼, ସମସ୍ତେ ବସି ଫୁସୁଫୁସୁ ହୋଇ କଥାବାର୍ତ୍ତା ହେଉଛନ୍ତି । କଥାବାର୍ତ୍ତା ସରିଲାରୁ ଦାଢ଼ୀବନ୍ତ ଯୁବକଟି ସେହି ରାତିରେ ସେଠୁ ଚାଲି ଗଲେ । ପର ଦିନ ରାତି ନ ପାହୁଣୁ ଯୁବତୀ ଦୁଇ ଜଣ ମଧ୍ୟ ଝୁଙ୍ଗୀ ଛାଡ଼ି ବାହାରି ଗଲେ । ଦୁଇ ଦିନ ପରେ ପୁଣି ସେହି ଚାରି ଜଣ ଯାକ ଆସି ଅଧରାତିରେ ସେହି ଝୁଙ୍ଗୀରେ ଏକଠି ହେଲେ । ସେମାନଙ୍କ ଭିତରେ ପୁଣି ଗୁପ୍‌ଚୁପ୍ ମନ୍ତ୍ରଣା ଚାଲିଲା । ଜଣେ କହିଲେ, ସରକାର ଆମକୁ ଜଗିବାକୁ ଅମୁକ ମିଶ୍ରଙ୍କୁ ପଠାଇଛନ୍ତି । ସେ ତ ଜଣେ, ଆମେ ଯଦି ଦୁଇଟି ଜାଗାରେ ଏକା ସାଂଗରେ

କାମ ଆରମ୍ଭ କରି ଦେବା ତେବେ ସେ ନିଶ୍ଚୟ ବାଉଳା ହେବେ । ତେଣୁ ଦୁଇଟି କାଗା ଆଗେ ବଛାଯାଉ । ଆଉ ଜଣେ କହିଲେ, ମୁଁ କାଳିଆପାଟ ଯାଇଥିଲି । ସେଠା ଲୋକେ ସାଆନ୍ତେଙ୍କୁ ମାନନ୍ତି । ସାଆନ୍ତେ କହିଲେ ସେମାନେ ସମୁଦ୍ରକୁ ଡେଇଁ ପଡ଼ିବେ । ତେଣୁ ସାଆନ୍ତେ ଆମ ସାଂଗରେ ସେଠାକୁ ଚାଲନ୍ତୁ । ଆଉ ଜଣେ କହିଲେ, ସାଆନ୍ତେ ଏହିକ୍ଷଣି ପଦାକୁ ବାହାରି ଯଦି ଧରା ପଡ଼ିଯିବେ ତେବେ ଏ ଅଞ୍ଚଳର ଲୋକଙ୍କ ସହିତ ଯୋଗସୂତ୍ର ରକ୍ଷା କରିବା କଠିନ ହୋଇଯିବ । ଆମର ସବୁ ପାଞ୍ଚ ପସର ପାଟିଯିବ । ଯଦି କୁଜଂଗ ରାଣୀ ଥରେ କାଳିଆପାଟ ଆସନ୍ତେ ତେବେ ଆମ କାମ ଫତେ ହୋଇ ଯାଆନ୍ତା ।



ଏହାପରେ ଅନେକ ଆଲୋଚନା ପରେ ସ୍ଥିର ହେଲା ଯେ ଜଣେ ଯୁବତୀ କୁଜଂଗର ଯୋଡାନଣ୍ଡ ଅଂଚଳକୁ ଯାଇ କାମ ଆରମ୍ଭ କରିବେ । ପ୍ରୌଢ଼ ଜଣକ ତାଙ୍କ ସାଂଗରେ ଯିବେ । ଆଉ ଜଣେ ଯୁବତୀ ପାରାଦୀପ ଉଆସକୁ ଯାଇ କୁଜଂଗ ରାଣୀଙ୍କୁ ଏ କାମରେ ଯୋଗ ଦେବାପାଇଁ ମନାଇବେ

ଏବଂ ଯେ କୌଣସି ପ୍ରକାରେ ତାଙ୍କୁ ମଂଗାଇ କାଲଆପାଟ ନେଇଯିବେ । ଦାଢ଼ିବନ୍ତ ଯୁବକ ଜଣକ ବଣିକୁନ୍ଦରେ ରହିବେ । ରାତ୍ତି ଦଶଟା ପରେ ସେ ବଣିକୁନ୍ଦରୁ ବାହାର ବୃରିଆଡ଼େ ବୁଲି ଷେନ୍ଦ ପ୍ରସ୍ତୁତ କରିବେ ।

ରାତ୍ତି ନ ପାହୁଣୁ ଦାଢ଼ିବନ୍ତ ଯୁବକ ଜଣକ ଟୁଙ୍ଗୀରୁ ଚୃଲି ଗଲେ । ସକାଳ ହେଲାରୁ ବଇଦୀ ମହାନ୍ତି ନଦରୁ ଉଠି ଆଗ ଗଣିଦେଲେ ଟୁଙ୍ଗୀରେ ଖାଉଟି କେତେ ଜଣ ଅଛନ୍ତି । ଖାଉଟି ସଂଖ୍ୟା ଯେତେ ହେଉନା କାହିଁକି, ବଇଦୀ ମହାନ୍ତି ତାଙ୍କ ଗୃଙ୍ଗୁଡ଼ରୁ କାଢ଼ିବେ ଗୋଟିଏ ବାଇଗଣ । କାରଣ ପଚୃଶ ବର୍ଷ ପୂର୍ବର କୁଜଂଗ ଆଜିକା କୁଜଂଗ ନୁହେଁ । କଟକରୁ ମଟର ଯାଏ ଏପଟେ ତାରପୁର, ସେପଟେ ଜଗତ୍‌ସିଂହପୁର ବା ହରିହରପୁର ଯାକେ । ତେଣିକି ବଳଦଗାଡ଼ି ନ ହେଲେ ଚରଣଗାଡ଼ି ଆଶ୍ରା । ମାଛ, ଧାନ, ପାନ ଯେତେ ଇଚ୍ଛା ସେତେ ମିଳିବ । ପନିପରିବା ସାତ ସପନ । ଟୁଙ୍ଗୀରେ ମାଛ ଶୁଖୁଆ ପଶେନାହିଁ । ବଇଦୀ ମହାନ୍ତି ଅଭ୍ୟାଗତଙ୍କ ପାଇଁ ଅତି କଷ୍ଟରେ ପନିପରିବା ଯୋଗାଡ଼ କରି, ରଖିଥୋଇ ଖରଚ କରନ୍ତି । ତେଣୁ ଖାଉଟି ସଂଖ୍ୟା ଅନୁସାରେ ସେ ସେହି ଗୋଟିଏ ବାଇଗଣକୁ ଫଡ଼ଫଡ଼ କରି କାଟନ୍ତି । ମୁଣ୍ଡ ପିଛା ଯେତେ ଇଚ୍ଛା ଭାତ ସାଂଗରେ ଲଗାଇ ଖାଇବାକୁ ଫଡ଼ିଏ ବାଇଗଣ । ସମସ୍ତେ ଖାଇ ବସିଲେ ମହାନ୍ତିଏ ଟୁଙ୍ଗୀ ଗମ୍ଭୀରିରୁ ଗୋଟିଏ ପାଚିଲା ଆମ୍ବ କାଢ଼ନ୍ତି । ଟୁଙ୍ଗୀ ଆମ୍ବଗଛରେ ମିଠା ଆମ୍ବ ଲୁବ୍ଧ ହୋଇଥାଏ । କିନ୍ତୁ ବାଇଗଣ ପରି ସେ ଆମ୍ବଟି ମଧ୍ୟ ଖାଉଟି ସଂଖ୍ୟା ଅନୁସାରେ ନୋଳାନୋଳା ହୋଇ କଟାହୁଏ । ହେଉ ପଛେ ନୋଳାଏ ଆମ୍ବ, ଫଡ଼ିଏ ବାଇଗଣ; ଘରେ ଥାନ ଦେଇ ସେତକ ଦେବାକୁ ତ କୁଜଂଗ

ରାଜ୍ୟରେ କେହି ଭରଷିଲେ ନାହିଁ । ସରକାରୀ ହାକମ ଡେଙ୍ଗୁରା ପିଟାଇ କହି ଦେଇଛି—ରମା ଦେବୀ, ମାଳତୀ ଚୌଧୁରୀଙ୍କୁ ଘରେ ରଖିବ ନାହିଁ, ଡ଼ଙ୍ଗା ପାରି କରିବ ନାହିଁ, ତାଙ୍କ ସଭା ଶୁଣିବାକୁ ଯିବ ନାହିଁ । ଯେ ଏ ଆଦେଶ ଅମାନ୍ୟ କରିବ ତା ଘରଡ଼ିହ କୋରଖ ହେବ, ସେ ଜେଲ୍‌କୁ ଯିବ । ଏ କଥା ଶୁଣି ଲୋକେ ବରଡ଼ା ପତ୍ର ପରି ଥରୁଥାନ୍ତି ।

ଧନ୍ୟ ସେ ବଇଦୀ ମହାନ୍ତ ! ଜାଣୁ ଜାଣୁ ହାଣ କୁରାଢ଼ି ବେକକୁ ନେଇ ସେ ଭୁଆସୁଣୀ ଦୁଇଟାଙ୍କୁ ଟୁଙ୍ଗୀରେ ସ୍ଥାନ ଦେଇଛନ୍ତି ।

ବାଇଗଣ ଛତୁଅଣ, ପାଚିଲା ଆମ୍ବ ଲଗାଇ ଭାତ ଖାଇ ମାଳତୀ ଚୌଧୁରୀ ଗଲେ ପୋତାନଈ । ସେପାଖର ଲୋକେ ତାଙ୍କୁ ଜବାବ ଦେଇଛନ୍ତି ସେମାନେ ତାଙ୍କ ସଙ୍ଗେ ଲୁଣମାରି ଯିବେ । ପ୍ରୌଢ଼ ଜଣକ କେନ୍ଦୁପାଟଣାର ଡାକ୍ତର ବ୍ରଜନାଥ ମିଶ୍ର । ସେ ମଧ୍ୟ ପୋତାନଈ ଗଲେ । ଆଉ ଗୋଟିଏ ପିଲା ଶତ୍ରୁଘ୍ନ ସାହୁ ସାଂଗରେ ଗଲା । ସେ ଧନୀଘର ପିଲା । କୁଜଂଗରେ ଚଳିବା ତା ପକ୍ଷରେ କଷ୍ଟ । ତଥାପି ମାଳତୀ ଚୌଧୁରୀଙ୍କ ସ୍ନେହମମତା ଓ ଆନ୍ଦୋଳନର ଉନ୍ମାଦନାକୁ ଏଡ଼େଇ ନ ପାରି ଏ ଅପନ୍ତରା ରାଇଜରେ ସେ ଆସି ବୁଲୁଛି ।

ତେଣେ ରମା ଦେବୀ ଗଲେ ପାରାଦୀପ ଉଆସକୁ । କୁଜଂଗ ରାଣୀ ତାଙ୍କ ସାନ ଜେମା ରତ୍ନମାଳୀଙ୍କ ସଂଗେ ସେଇଠି ରହନ୍ତି । ରମା ଦେବୀ କୁଜଂଗ ରାଣୀଙ୍କୁ ଭେଟି ଲବଣ ସତ୍ୟାଗ୍ରହ କଥା କହିଲେ । ଇଞ୍ଚୁଡ଼ି ସାରଥା ଆଦି ଗାଁର ଶହଶହ ବୋହୂଭୁଆସୁଣୀ କପରି ଲୁଣ ଆଇନ୍ ଅମାନ୍ୟ କରି ଲୁଣ ମାରିଲେ

ସେ କଥା କହୁଲେ । ଗୁଜରାଟ ବମ୍ବେଇର ବଡ଼ଘରର ଝିଅବୋହୁ ସରୋଜିନୀ ନାଇଡୁ, ହଂସାବେନ୍ ମେହ୍‌ଟା, ପେରିନ୍‌ବେନ୍ କ୍ୟାପ୍‌ଟେନ୍, ଜାନକୀ ବାଈ ବଜାଜ ପ୍ରଭୃତି କ୍ୱପର ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ଦାଣ୍ଡକୁ ବାହାରି ଦେଶ କାମରେ ଲାଗିଲେଣି ସେ କଥା ଶୁଣି କୁଜଂଗ ରାଣୀ କାଳିଆପାଟ ଯାଇ ଲବଣ ସତ୍ୟା-ଗ୍ରହରେ ଯୋଗ ଦେବାକୁ ସ୍ଥିର କଲେ । ହାକିମ ମିଶ୍ର ତ ଢେଙ୍ଗୁରା ଦେଇଛନ୍ତି ଯେ ରମା ଦେବୀ, ମାଳତୀ ଚୌଧୁରୀଙ୍କୁ କେହି ଡଙ୍ଗାରେ ବସାଇବ ନାହିଁ । ତେଣୁ ସେମାନେ ଲୋକଲୋଚନ ଅଗୋଚରରେ ରାତି ଅଧରେ ଗାଁର ଡାଟିକବାଟ ପଡ଼ିଲାରୁ କେତେ ଜଣ ଚାକରଙ୍କୁ ସାଂଗରେ ଧରି ବାହାରିଲେ । ଛାପିଛାପିକା କାଳିଜନ୍ହ ପଡ଼ିଥାଏ । ଚାକରମାନେ ଡ଼ଂଗା ବାହି ନେଲେ ।

ସେମାନେ କାଳିଆପାଟରେ ପହଞ୍ଚିଲା ବେଳକୁ ସାଆନ୍ତେ ଅର୍ଥାତ୍ ଶ୍ରୀ ନାରାୟଣ ବୀରବର ସାମନ୍ତ ସେଠାରେ ପହଞ୍ଚି ଉଦୟ ବଟର ମହିମା ବଖାଣି-ବଖାଣି କାଳିଆପାଟ ଲୋକଙ୍କୁ ତତେଇମତେଇ ସାରିଲେଣି । କୁଜଂଗ ରାଣୀ ପହଞ୍ଚିବା ମାନେ କାଳିଆପାଟରେ ହୁରି ପଡ଼ିଗଲା, ନିଜେ ରାଣୀ ବିଜେ କରିଛନ୍ତି ଲୁଣ ମାରି ଯିବାକୁ । ଅଥର୍ବ ବୁଢ଼ୀହାଢ଼ୀଙ୍କୁ ଛାଡ଼ିଦେଲେ ବୋହୂ ଭୁଆସୁଣୀ କେହି ଆଉ ସେ ଦିନ ଘରେ ରହିଲେ ନାହିଁ । ଲାଜସରମ ଡରଭୟ ସବୁ କୁଆଡେ ଗଲା । ସମସ୍ତେ ଟୋକେଇପାଛିଆ ମୁଣ୍ଡେଇ ଆସି ରାଣୀଙ୍କ ପାଖରେ ହାଜର ହେଲେ । ରାତି ପାହିଲାରୁ ପୁରୁଷମାନେ ହରିବୋଲ ପକେଇଲେ, ସ୍ତ୍ରୀଲୋକମାନେ ଶହଶହ ସଂଖ୍ୟାରେ ହୁଳହୁଳୀ ଦେଇ ଗଣ୍ଡିକୀପୁରକୁ ଟୋକେଇ ମୁଣ୍ଡେଇ ଲୁଣ ମାରି ଗଲେ । ନିଜେ ରାଣୀ ମଧ୍ୟ ଚାଂଗୁଡ଼ିରେ ଲୁଣ ମାଟି ଭରି

ଲୁଣ ଆଇନ୍ ଅମାନ୍ୟ କଲେ । ଶହଶହ ସ୍ତ୍ରୀଲୋକଙ୍କ ମୁଣ୍ଡରେ ଲୁଣ ପାଛିଆ । ପୁଲିସ କଅଣ କରିବେ କିଛି ବୁଝି ନ ପାରି ଖାଲି ଚାହିଁ ରହିଲେ । ସାରା ଓଡ଼ିଶାରେ ଚହଳ ପଡ଼ିଗଲା ।

ଏଣେ ପୋତାନଈରେ ମାଳତୀ ଚୌଧୁରୀ ଲୁଣ ମାରିବେ ବୋଲି ଗାଁ ଚଉକିଆଙ୍କଠାରୁ ଖବର ପାଇ ହାକିମ ମିଶ୍ର ସେହି ଆଡ଼କୁ ମୁହାଁଇଲେ । ମିଶ୍ରେ-ଆପଣେ ଟିକିଏ ଆଡ଼ାଚୌଡ଼ା ଲୋକ । ଦଳକଢ଼ା ବେଳେ ଗାଁଗଣ୍ଡାରେ ବୁଲିଲା-



ବେଳେ ଦୁଇ ଜଣ ଚଉକିଆଙ୍କ ଉପରେ ଦୁଇ ହାତ ଭରା ଦେଇ ସେ ଚାଲନ୍ତି । ମାଳତୀ ଚୌଧୁରୀ ଖୋଦ୍ ରବୀନ୍ଦ୍ରନାଥ ଠାକୁରଙ୍କର ଛାତ୍ରୀ । ଶାନ୍ତିନିକେତନର ମୁକ୍ତ ପରିବେଶରେ ସେ ବାଳି ହରିଣ ପରି ସ୍ୱଚ୍ଛନ୍ଦ ଗତିରେ ବୁଲିବା ଲୋକ । ହାକିମ ପୋତାନଈରେ ପହଞ୍ଚିବା ବେଳକୁ ସେଠାରେ ଆଇନ୍ ଅମାନ୍ୟ ପର୍ବ ଶେଷ କରି ସମସ୍ତେ ଯେଝା ସ୍ଥାନକୁ ଗଲେଣି । କାହା ଶିକ୍ଷାରେ କେଜାଣି ଗାଁରେ ପିଲେ ଛୋଟଛୋଟ ପିଲା ହାକିମଙ୍କୁ ଦେଖି ପାଟି କଲେ—

"ହାକିମ ନନା ହାକିମ ନନା
ଲୁଣ ମରା ହେଲା ପଛକୁ ଅନା ।"

ଏହାପର ଛକାପଂଝା ରୀତିରେ ଆଜି ଏଠି କାଲି ସେଠି ବୁଲି ବୁଲି ରମା ଦେବୀ, ମାଳତୀ ଚୌଧୁରୀ ବିଭିନ୍ନ ସ୍ଥାନରେ ଲବଣ ସତ୍ୟାଗ୍ରହ ଚଳାଇଲେ । ଖବର ପାଇ ହାକିମ ମିଶ୍ର ସେଠାରେ ପହଞ୍ଚିବା ବେଳକୁ ସେ ସ୍ଥାନ ଶୂନ୍‌ଶାନ୍ । ଖାଲି ପିଲା ଗୁଡ଼ାକ ଗୋଡ଼େଇ ଗୋଡ଼େଇ ବୋଲିବେ —



"ହାକିମ ନନା ହାକିମ ନନା
ଲୁଣ ମରା ହେଲା ପଛକୁ ଅନା ।"

କଟକ ସତ୍ୟାଗ୍ରହ ଶିବିରରେ ଏ ଖବର ପହଞ୍ଚିଲାରୁ ଜାତୀୟ କବି ବୀରକିଶୋର କହିଲେ, ଏଇଥର ମୁଁ ମାଳତୀ-ମାଧବ ନାଟକ ଲେଖିବି ।

ଦେବସ୍ନାନ ପୂର୍ଣ୍ଣିମା ପର୍ଯ୍ୟନ୍ତ କୁଜଂଗରେ ଏହି ନାଟକ ଚାଲିଲା । ଉଭୟ କୁଜଂଗରୁ ଉଭେଇ ଗଲା । ଦୁର୍ଯ୍ୟୋଧନ ମାଷ୍ଟ୍ରେ, ଜଗନ୍ନାଥ ଶତପଥୀ ଆଦି ବହୁ ଯୁବକ ସତ୍ୟାଗ୍ରହୀ ବାହାରିଲେ । ଦେବେନ୍ଦ୍ର ବାନାର୍ଜି, ପୁରୁଷୋତ୍ତମ ସିଂହ ପ୍ରଭୃତି ପାଠ ଛାଡ଼ି ବାନର ସେନା ହେଲେ । ପୁଲିସ ଗାଁଏ ଗାଁଏ ପଶି ଲୋକଙ୍କୁ ଡରେଇଲେ, ଧମକେଇଲେ, ଗିରଫ କଲେ; ମାତ୍ର ଲୁଣ ମରା ବନ୍ଦ କରି ପାରିଲେ ନାହିଁ । ବର୍ଷା ଦିନ ଆରମ୍ଭ ହେବାରୁ ଲୁଣମରା ବନ୍ଦ ହେଲା । କୁଜଂଗରୁ ସତ୍ୟାଗ୍ରହୀମାନେ କଟକ ଆସି ମଦ ଦୋକାନରେ ପିକେଟିଂ ଆରମ୍ଭ କଲେ । ଦେବସ୍ନାନ ପୂର୍ଣ୍ଣିମା ଦିନ ସାଆନ୍ତେ ମଧ୍ୟ ବନ୍ଦୀ ହୋଇ କଟକ ଆସିଲେ ।

ଆପଣ ଆଜି ମଧ୍ୟ କୁଜଂଗ ଗଲେ ସେ ଯୁଗର ପିଲା ଏ ଯୁଗର ବୁଢ଼ାଙ୍କ ମୁହଁରୁ ଶୁଣିବେ —

"ହାକିମ ନନା ହାକିମ ନନା
ଲୁଣ ମରା ହେଲା ପଛକୁ ଅନା ।"

—o—

